# ହାସ୍ୟସାଗର !

ପ୍ରଥମ ଲହରୀ

BY

N. P. Mitra

ଶ୍ରୀ ନାରାୟଣପ୍ରସାଦ ମିତ୍ରଙ୍କଦ୍ୱାରା

ବିରଚିତ



CUTTACK,

Printed by the Cuttack Printing Co. Ld.

1902 ମୂଲ୍ୟ ୫୦/

# ହାସ୍ୟ ସାଗର ।

ପାଠକ ମହାଶୟ ! ପୁସ୍ତକ ଖଣ୍ଡି ପାଠକରି ଲେଖକଙ୍କୁ ଯେତେ-ଇଚ୍ଛା ଗାଳି ଦେଉନ୍ତୁ କିନ୍ତୁ ଟିକିଏ ହସିଲେ ଶ୍ରମ ସଫଳ ହେବ ।

—୦:୦—

## ମୂର୍ଖ-ପଣ୍ଡିତ

ଏକ ଗ୍ରାମରେ ଗୋଟିଏ ବ୍ରାହ୍ମଣ ଥାଏ । ସେ ବଡ ଦରିଦ୍ର । ଏଣୁକରି ପ୍ରତ୍ୟହ ସକାଳୁଁ ସନ୍ଧ୍ୟା ପର୍ଯ୍ୟନ୍ତ ପ୍ରାୟ ପଞ୍ଚାଶ ଥର ବ୍ରାହ୍ମଣୀ ତାଙ୍କୁ ପଁହରରେ ଚିଁଅଁର ବଞ୍ଚନ୍ତି । ବ୍ରାହ୍ମଣ ବଡ ପାଠୁଆ, ଏମନ୍ତ କି-ପଞ୍ଚାଶ ଗୋଟି ଅକ୍ଷର ମୁଦ୍ଧା ତାହାର ପେଟ ଭିତରୁ ବାହାରି ପାରେ ନାହିଁ । ଦିନକରେ ବ୍ରାହ୍ମଣ ଭାରିଯାଠାରୁ ଅନେକବେଳ ଯାଏ ଚିଁଅର ବଞ୍ଚଣା ପାଇ ବଡ ଦୁଃଖିତ ହୋଇ ମନେ ମନେ ବିଚାର କଲା "ମୁଁ ତ ବ୍ରାହ୍ମଣ ସୁତରାଂ ପଣ୍ଡିତ । ଯେତେବେଳେ ପଣ୍ଡିତମାନେ ରାଜାଙ୍କଠାରୁ ଟଙ୍କା କଉଡ଼ି ଆଣି ସୁଖରେ ଦିନ କାଟୁଛନ୍ତି ସେ ସ୍ଥଳେ ମୁଁ ଲୁଚି ହୋଇଁ ଘରେ ବସି ରହିବାରୁ ଭାର୍ଯ୍ୟାଦତ୍ତ ବଞ୍ଚଣା-ପ୍ରହାରକୁ ଭାଜନ ହେଲେ କାହାର ଦୋଷ" । ଏମନ୍ତ ବିଚାର କରି ସେ ଧୋବାଘରୁ ଯୋଡାଏ ଲୁଗା ମାଗିଆଣି ପିନ୍ଧିଲା ଓ ନାସାଗ୍ରରୁ ନେଷ୍ଟ ପର୍ଯ୍ୟନ୍ତ ଗୋଟିଏ ହନୁମନ୍ତିଆ ତିଲକ ଲଗାଇ ରାଜ-ସଭାକୁ ଯାତ୍ରା କଲା । ଯାଉଁ ଯାଉଁ ପଥରେ ମନେ କଲା " ମୁଁ ତ ଶ୍ଳୋକ ଆଦି କିଛି ଜାଣଇ ନାହିଁ, ତେବେ କି ଉପାୟରେ ରାଜାଙ୍କୁ ସନ୍ତୋଷ କରିବି" । ଏହିପରି ଭାବୁଁ ଭାବୁଁ ଦେଖିଲା ଗୋଟାଏ କୁଆ ଏକ ଗଛ ଡାଳରେ ବସି ଗୋଟାଏ ହାଡ଼ା କାକୁଡ଼ିକୁ ଥଣ୍ଟରେ ଠୁକାଠୁକି ଅଛି ଓ କହିଁକୁ ଧାଇଁ

ବୋଲି ପଡୁଅଛି । ଏହା ଦେଖି ସେ ମନେ ମନେ ଗୋଟିଏ ଶ୍ଳୋକ ରଚନା କଲା । ସେ ଶ୍ଳୋକଟି ଏହି । "ଘଷର ଘଷର ପନର ଘଷର ଅନ୍ତର ଘଷର ପାଣି" ଏହି ଶ୍ଳୋକଟି ରଚନା କରି ସେ ମନେ ମନେ ବଡ ଆନନ୍ଦିତ ହୋଇଁ ନଅରଦ୍ୱାରେ ପ୍ରବେଶ ହେଲା, ସେଠାରେ କିଛି କାଳ ଠିଆ ହୋଇଁ ରହିଲା । ପରେ ଜଣେ ପଣ୍ଡିତ ରାଜ-ସଭାରୁ ଆପଣା ଘରକୁ ଫେରି ଯାଉଥିଲେ । ପଣ୍ଡିତ ବ୍ରାହ୍ମଣକୁ ଦେଖି ପରିଚୟ ପଚାରିଲେ । ସେ ଆପଣାର ପରିଚୟ ଦେଲା । ତାକୁଁ ସେ ପଣ୍ଡିତ ପଚାରିଲେ "ତୁମ୍ଭେ ଏଠାକୁ କାହିଁକି ଆସିଅଛ" ? ଏଥିରେ ବ୍ରାହ୍ମଣ ଉତ୍ତର କଲା "ମୁଁ ଗୋଟିଏ ଭଲ ଶ୍ଳୋକ ରଚନା କରିଅଛି ତାହା ରାଜାଙ୍କୁ ଶୁଣାଇବା ପାଇଁ ଆସିଅଛି" । ପଣ୍ଡିତ କହିଲେ "ତୁମ୍ଭର ଶ୍ଳୋକଟି ଆମ୍ଭଙ୍କୁ ଶୁଣାଇପାରିବ" ? ବ୍ରାହ୍ମଣ କହିଲା "କାହିଁକି ନ ପାରିବା ? ଶୁଣ" "ଘଷର ଘଷର ପନର ଘଷର ଅନ୍ତର ଘଷର ପାଣି" । ଶ୍ଳୋକ ଶୁଣି ପଣ୍ଡିତ ମୃଦୁହାସ ହୋଇ କହିଲେ "ଅଚ୍ଛା ଆମ୍ଭେ ଏହାର ପାଦ ପୂରଣ କରି ଦେଉ-ଅଛୁଁ ଶୁଣ" "ତୁମ୍ଭେ ଯହିଁକି ଘଷର ପଷର ଆମ୍ଭେତ ସେ କଥା ଜାଣି" ଏହା କହି ପଣ୍ଡିତ ଚାଲିଗଲେ । ଆଉ ବ୍ରାହ୍ମଣର ଆନନ୍ଦର ପରସୀମା ରହିଲା ନାହିଁ । ସେ ରାଜସଭାକୁ ଯାଇ ଉଚ୍ଚସ୍ୱରରେ ବାରମ୍ବାର କହିବାକୁ ଲାଗିଲା "ଘଷର ଘଷର ପନର ଘଷର ଅନ୍ତର ଘଷର ପାଣି । ତୁମ୍ଭେ ଯହିଁକି ଘଷର ପଷର ଆମ୍ଭେତ ସେ କଥା ଜାଣି" ସଭାରେ ସମସ୍ତେ ପ୍ରଥମେ ଆଶ୍ଚର୍ଯ୍ୟ ହେଲେ, ପରେ ବ୍ରାହ୍ମଣର ସବୁ କଥା ଶୁଣି ଠୋଠୋ କରି ହସିବାକୁ ଲାଗିଲେ । ତପରେ ରାଜା ବ୍ରାହ୍ମଣକୁ ଗୋଟିକେତେ ଟଙ୍କା ଦେଇ ବିଦାୟ କଲେ । ମାତ୍ର ଶ୍ଳୋକଟି ତାଙ୍କ ମନରୁ ପାସୋର ଗଲା ନାହିଁ । ସେହି ଦିନୁ ସେ

କେବେ କେବେ ଉକ୍ତ ଶ୍ଳୋକ ମନେ୨ ପଢ଼ି ମୂର୍ଖବନ୍ଧସି ହସନ୍ତି । ମଧ୍ୟ କେବେ କେବେ ତାହା ପାଟିରେ ଉଚ୍ଚାରଣ କରନ୍ତି । ହଠାତ୍କରେ ସେ ରାଜା ଛୁଆର ହେଉଛନ୍ତି ଏମନ୍ତ ସମୟରେ ଭଣ୍ଡାରି ଶିଳରେ ଜଳ ଦେଇ ଅନେକ ବେଳଯାଏ ଷୁରକୁ ଘଷିବାକୁ ଲାଗିଲା । ଏହା ଦେଖି ରାଜାଙ୍କର ଶ୍ଳୋକଟି ମନେ ପଡ଼ିଲା । ସେ ମୂର୍ଖବନ୍ଧସି କହିଲେ "ଘଷର ଘଷର ପଦର ଘଷର ଅଛିର ଘଷର ପାଣି । ତୁମ୍ଭେ ଯହିଁକି ଘଷରପଷର ଅମ୍ଭେତ ସେ କଥା ଜାଣି" ଏହା ଶୁଣି ଭଣ୍ଡାରି ବୋବାଳି ପାଡ଼ି ରାଜାଙ୍କ ଗୋଡ଼ତଳେ ପଡ଼ି ରହିଲା । ଏହା ଦେଖି ରାଜା ଆଶ୍ଚର୍ଯ୍ୟ ହୋଇ ତାକୁ ପଚାରିବାରେ ସେ କହିଲା 'ପ୍ରଭୁ ମୁଁତ ଅଳ୍ପମାନଙ୍କ ଲୋକ ମୋହର ବୁଦ୍ଧି କେତେ ! ମୁଁତ ଟଙ୍କା ଲୋଭରେ ତଣ୍ଟି କାଟିବାକୁ ବସିଥିଲି, ମୋତେ ରକ୍ଷା କରନ୍ତୁ ।' ରାଜା କହିଲେ "ତୁ ସରଳଭାବରେ ସବୁକଥା କହିଗଲେ ତୋହର କୌଣସି କ୍ଷତି ହେବ ନାହିଁ, ନୋହିଲେ ତୋତେ ସବଂଶରେ ହାଣିବି ।" ତହୁଁ ଭଣ୍ଡାରି କହିଲା "ଅବଧାନ ମୁଁ ମୂରୁଖ, ମନ୍ତ୍ରୀ ମୋତେ ଆପଣଙ୍କର ତଣ୍ଟି କାଟିବାକୁ ହୁକୁମ ଦେଇ କହିଲେ, ଏ କର୍ମ କରି ପାରିଲେ ତୋତେ ଦଶବାଟି ଭୂଇଁ ଖଞ୍ଜିଦେବି ।" ତେଣୁ ମୁଁ ଏ କୁକର୍ମ କରିବାକୁ ବସିଥିଲି । ରାଜା କହିଲେ "ଆମ୍ଭେ ମଲେ ମନ୍ତ୍ରୀଙ୍କର କି ଲାଭ ହେବ ?" ଭଣ୍ଡାରି କହିଲା " ମନ୍ତ୍ରୀ ନିଜେ ରାଜା ହେବେ ବୋଲି ଏହା କରିଥିଲେ ।" ତହୁଁ ରାଜା ତାକୁ ଅଭୟ ଦେଇ ବୁଝିଲାରୁ ସବୁକଥା ଠିକ ଥିବାର ପ୍ରମାଣ ହେଲା । ତହୁଁ ସେ ଦୋଷିମାନଙ୍କୁ ଶୂଳରେ ଦେଇ ପୂର୍ବୋକ୍ତ ମୂର୍ଖ-ପଣ୍ଡିତଙ୍କୁ ତାଙ୍କର ଶ୍ଳୋକପାଇଁ ବହୁତ ଟଙ୍କା ଓ ଭୂମି ଦେଲେ । ଅତଏବ ପାଠକ ! କୌଣସି ବିଷୟ ନିତାନ୍ତ ସାମାନ୍ୟ ହେଲେହେଁ ତାକୁ ତୁଚ୍ଛ ଜ୍ଞାନ କରି ପରିତ୍ୟାଗ କରିବା ଉଚିତ ନୁହେ ।

## ଅନ୍ଧମାନଙ୍କର ଗଜ ଦର୍ଶନ ।

ଗୋଟିଏ ଗାଁ ମୁଣ୍ଡରେ ଗୋଟିଏ ବରଗଛ ତଳେଏକ ଚୂନ ମଣ୍ଡପ ଥାଏ । ସେଠାରେ ପ୍ରତ୍ୟହ ଆଖପାଖ ଗାଁମାନଙ୍କରୁ ଅନ୍ଧମାନେ ଆସି ଠୁଳ ହୋଇ ନାନା ପ୍ରକାର ଗଳ୍ପ କରନ୍ତି । ଦିନକରେ ସେମାନେ ବସି କଥାବାର୍ତ୍ତା କରୁଅଛନ୍ତି ଏମନ୍ତ ସମୟରେ ନିକଟରେ ଘଣ୍ଟିର ଶବ୍ଦ ଶୁଣିଲେ । ତହିଁରେ ଜଣେ ଅନ୍ଧ ପଚାରିଲା "ଏ କି ଶବ୍ଦ ହେଲା"? ଏ ସମୟରେ ଜଣେ ଚଷା ସେହି ବାଟେ ଯାଉଥିଲା, ସେ କହିଲା " ହାତି ଆସୁଅଛି , ଏ ତାହାର ଗଳାରେ ଥିବା ଘଣ୍ଟିର ଶବ୍ଦ ।" ଏହା ଶୁଣି ଅନ୍ଧମାନେ ଦଉଡାଦଉଡ କରି ହାତି ଦେଖିବାକୁ ଗଲେ ଓ ତାହା ନିକଟରେ ପହଞ୍ଚି ଦଗଣ୍ଡି୨ ଦେଖିବାକୁ ଲାଗିଲେ । ଦଣ୍ଡକ ଉତ୍ତାରୁ ପୁଣି ଚୂନମଣ୍ଡପକୁ ଫେରି ଆସିଲେ । ସେଠାରେ ପହଞ୍ଚିଲାରୁ ଜଣେ ଅନ୍ଧ କହିଲା " ଭାଇ ଗୋଟିଏ କଥା ପଚାରିବାର ଅଛି, ହାତୀଟିତ ସାପପରି , ତାହାର ମୁଣ୍ଡରେ ବାଲ ଅଛି, ତଳକୁ ମୁଣ୍ଡକରି ଝୁଲୁଅଛି, ଆଉ ତାହାର ଗୋଡ଼ ନାହିଁ ? ଯେବେ ବୋଲିବ ଗୋଡ଼ ନାହିଁ ତେବେ ସେ ଚାଲୁଛି କିପରି ? " ଏହା ଶୁଣି ଅପର ଅନ୍ଧ କହିଲା " ତାରେ ତାହା ନୁହେ ଭୁମ୍ଭେ ହାତି ଦେଖି ପାରିଲ ନାହିଁ, ହାତୀଟି ଠିକ ଖୁମ୍ବପରି, ଗୋଟିଏ ଗୋଡ଼, ତାହା ପୁଣି ତଳକୁ ଲାଗିଅଛି, ସେ ଡେଁଇ ଡେଁଇ ଚାଲଇ କିନ୍ତୁ ଗୋଟିଏ ସନ୍ଦେହ ଏହି ଯେ ତାହାରତ ମୁଖ ନାହିଁ ସେ ଖାଏ କେଉଁ ବାଟେ ?" ତହୁଁ ତୃତୀୟ ଅନ୍ଧ କହିଲା" ତୁମ୍ଭେମାନେ କି ଅନ୍ଧ ? ହାତୀଟିତ ଠିକ କୋରମେଇ ପରି ତାହାର ମୁଣ୍ଡ କାହୁଁ ଆଇଲା ଗୋଡ଼ କାହୁଁ ଆଇଲା ସେ ଡେଁଇ ଡେଁଇ ଚାଲେ ଏହା କାହୁଁ ଜାଣିଲ ?" ସର୍ବ ଶେଷରେ ଏକ ପୁରୁଣା ଅନ୍ଧ କହିଲା " ତୁମ୍ଭେମାନେ ସମସ୍ତେ

ଅନ୍ଧ । ଅକାରଣରେ ଦଉଡ଼ ଦଉଡ଼ ଗଲ କିନ୍ତୁ କେହି ହାତୀ ଦେଖି ପାରିଲ ନାହିଁ । ଆମ୍ଭେ ଅନେକ କଷ୍ଟରେ ଏକ ହୁଁକା ଉପରେ ଚଢ଼ିଲାରୁ ଦେଖିଲୁଁ । ହାତୀ ଠିକ ଲୁମ୍ଫ ପରି” । ଏହିପରି ସମସ୍ତେ ଆପଣା ଆପଣା ମତର ଯଥାର୍ଥତା କହିବାକୁ ଲାଗିଲେ । ଶେଷରେ ସେମାନଙ୍କ ମଧ୍ୟରେ ଭାରି କନ୍ଦଳ ଲାଗିଲା । ବୋଲା ବୋଲି ହେଉଁ ଠେଲା ଠେଲି, ଧକା ଧକି, କୁନ୍ଦା କୁନ୍ଦି, ଠେଙ୍ଗା ଠେଙ୍ଗି, ଧୂଳିମାଟି, ପର୍ଯ୍ୟନ୍ତ ହୋଇ ଗଲା । ନିକଟରେ ଜଣେ ଭଲଲୋକ ଛିଡ଼ାହୋଇ କୌତୁକ ଦେଖୁଥିଲେ । ସେ ଏପରି କଳି ଦେଖି ଅନ୍ଧ-ମାନଙ୍କୁ ଡାକି କହିଲେ । “ତୁମ୍ଭେମାନେ ଅକାରଣ କାହିଁକି କଳି କରୁଅଛ ? ସମସ୍ତେ ହାତୀ ଦେଖିଥିଲ କିନ୍ତୁ ପୁରା ହାତୀ କେହି ଦେଖି ନାହିଁ” । ଅନ୍ଧମାନେ କହିଲେ “କାହିଁକି ?” ଭଲଲୋକ କହିଲେ “ ପ୍ରଥମ ବ୍ୟକ୍ତି ହାତୀର ଲାଞ୍ଜଟି ଦେଖିଅଛନ୍ତି, ଦ୍ୱିତୀୟ ବ୍ୟକ୍ତି ଗୋଡ଼, ତୃତୀୟ ବ୍ୟକ୍ତି ପେଟ ଓ ଚତୁର୍ଥ ବ୍ୟକ୍ତି କାନ ମାତ୍ର ଦେଖି ଅଛନ୍ତି ଅଥଚ ପୁରା ହାତୀ କେହି ଦେଖି ନାହିଁ । ଏସମସ୍ତଙ୍କୁ ଠୁଳ କଲେ ଯେମନ୍ତ ହେବ ହାତୀ ଠିକ ସେହି ପରି ଅଟଇ । ଅତଏବ ତୁମ୍ଭେମାନେ ଆଉ କଳି କର ନାହିଁ” । ଏହା ଶୁଣି ଅନ୍ଧମାନେ ତୁନି ହୋଇ ଯେ ଯାହା ଘରକୁ ଗଲେ । ପାଠକ ! ଯେଉଁମାନେ ଧର୍ମ୍ମ ଓ ଈଶ୍ୱର ତତ୍ତ୍ୱ ଘେନି କଳି କରନ୍ତି ସେମାନେ ଉପରଲିଖିତ ଅନ୍ଧଙ୍କଠାରୁ ବଡ଼ ନା ଛୋଟ ?

---

## ଅଦ୍ଭୁତ ଘର

ଗଉଡ଼ ପଡ଼ା ଗ୍ରାମରେ ହରି ମିଶ୍ରଙ୍କ ଭାଗବତ ଘରେ ଦିନେ ରାତ୍ରରେ ପୋଥି ବୋଲା ଶେଷ ହେଲା ଉତ୍ତାରୁ ଶ୍ରୋତାମାନେ ବସି ନାନା କଥା ଗଳ୍ପ କରୁଅଛନ୍ତି ଏମନ୍ତ ସମୟରେ

ରାମଦାସ ନାମରେ ଏକ ବାବାଜି କହିଲେ "ଆମ୍ଭେ ହରିଦ୍ୱାରଠାରୁ ଉତ୍ତର କୈଳାସ ପର୍ବତ ପାଖହୋଇ ଯଜ୍ଞଭୂମିକୁ ଯାଇଥିଲୁଁ ସେ ସ୍ଥାନର ମହିମା କଅଣ କହିବା । ଜଣେ ବୀରଭଦ୍ରସିଂହ ବୋଲି ମଲ୍ଲ ଅଛି, ସେ ମଦ୍ଦଣେ ଅଟାର ଗୋଟିଏ ରୋଟି, ସେ ୨୫ ର ହରଡ଼ର ଡାଲି, ଟୋକଣାଏ ତରକାରୀ, ଅଧମଦ୍ଦଣ କନ୍ଦ ଓ ଦଶ ସେର ଘିଅ ଓଳକେ ଆହାର କରେ, ଗଧକୁ ତରଖ ମହିଷଣଟି ଦୁଧ ପିଏ । ତାଙ୍କ ଦେହରେ ଏତେ ବଳ ଯେ ହକେ ଏକ ହାତିକା ଗୋଡରେ ହଣ ଓ ମୁଖରେ ଏକ ଏପଣ ଏତାର ଗୋଟା ହାତି ଯେବେ ଉଡଯାଉ୨ ଗୋଟିଏ ବରଗଛର ଗୁରକୋଶ ଲମ୍ବ ଏକ ଡାଳ ଉପରେ ବସି ହାତିମାନଙ୍କୁ ଗୋଟାଏ୨ କରି ଗିଳିବାକୁ ଲାଗିଲା, ସେତେବେଳେ ବୀରଭଦ୍ର ଓ ତାଙ୍କର କେତେକ ସଙ୍ଗୀ ସେ ଗଛମୂଳେ ବସିଥିଲେ । ବନ୍ଧୁମାନେ କହିଲେ "ଭଲା ବୀରଭଦ୍ର ତୁମ୍ଭେ ଡାଳ ସହିତ ଏ ହାତିକାକୁ ରାଜାଙ୍କର ଘୋଡ଼ା-ଶାଳ ଉପରେ ଫିଙ୍ଗିଦେଇ ପାରିବକି ?" ବୀରଭଦ୍ର ଉତ୍ତର କଲେ "ଏ କେଉଁ ବଡ଼ କଥା" ଏହା କହି ସେ ବୃକ୍ଷକୁ ମୂଳରୁ ଓପାଡି ଘୋଡାଶାଳକୁ ଉପରେ ପକାଇଦେଲେ । ଏହା ଶୁଣି ଜଣେ ପଚାରିଲା ସେ ଘୋଡ଼ାଶାଳଟି କେମନ୍ତ ? । ବାବାଜୀ କହିଲେ "ସେ ଘରର ଓସାର ପଞ୍ଚାଶକ୍ରୋଶ ଓ ଲମ୍ବର ସୀମା ନାହିଁ" । ଷଷ୍ଠି-ବାଦୀ ପଣ୍ଡା ନାମରେ ଜଣେ ବ୍ରାହ୍ମଣ ସେଠାରେ ଉଭା ହୋଇ ବସିଥିଲେ । ସେ କହିଲେ ଅବଧାନ ! ଆମ୍ଭେ ଯଜ୍ଞଭୂମିର ଦୁଇକ୍ରୋଶ ଦକ୍ଷିଣ ଗାଲୁଆପାଟଣା ନାମକ ଏକ ଗ୍ରାମକୁ ଯାଇଥିଲୁଁ । ସେ ଗ୍ରାମରେ ଆଦୌ ବର୍ଷା ହୁଅଇ ନାହିଁ । ଯେବେ ଗ୍ରାମବାସିମାନଙ୍କର ଜଳର ଆବଶ୍ୟକ ହୁଏ ତେବେ ସେମାନେ କେତେକ ଜଣ ଏକତ୍ର ହୋଇଁ ଗୋଟାଏ ଲମ୍ବ

ବାଉଁଶଦ୍ୱାରା ଆକାଶକୁ ପୋଡଦଅନ୍ତି । ତହୁଁ ପ୍ରଯୋଜକନାନୁରୂପ ପାଣି ତହିଁରୁ ଗଳିପଡ଼ଇ” । ଏହା ଶୁଣି ବାବାଜୀ ସବେଗରେ ପଚ୍ଚାରିଲେ “ଏଡ଼େ ଲମ୍ବ ବାଉଁଶଟା କେଉଁଠାରେ ରଖିଥାନ୍ତି” ? ପଣ୍ଡା କହିଲେ ‘ଯମ ଭୂମିର ଘୋଡା-ଶାଳର ପଛପିଣ୍ଡାରେ’ ସମସ୍ତେ କର ତାଳ ଦେଲେ । ବାବାଜୀଙ୍କ ମୁଖ ଅଉ ଉପରକୁ ଉଠିଲା ନାହିଁ । ଗୁଡାଏ ମିଛକଥା ବକବା ଗପୁଡ଼ି ଲୋକଙ୍କର ଖାସ କାମ । ତହିଁରେ ସେ ବିଶ୍ୱାସ କରେ ସେ ଓଲୁ ।

---

## କଣାବାଘ

ମଣିପୁର ନଗରରେ ଶ୍ୟାମବାରକ ନାମରେ ଜଣେ ଭଣ୍ଡାରୀ ଓ ଜଗୁମଣ୍ଡଳ ନାମରେ ଏକ ତନ୍ତି ବାସକରୁଥିଲେ । ଶ୍ୟାମବାରକର ପୁଅର ନାମ ଧନଆ ଓ ଯଗୁମଣ୍ଡଳର ପୁଅର ନାମ ହୃଣ୍ଡା ଥିଲା । ଦିନ-କରେ ଶ୍ୟାମବାରକର କୁଣିଆଘର ଯିବାର ଆବଶ୍ୟକ ହେବାରୁ ସେ ତାହାର ପୁଅକୁ ଡାକ କହିଲା ‘ଆରେ ଧନଆ, ମୁଁ କୁଣିଆଘର ଯାଉଛି କାଲି ରଜାଙ୍କର ପାଳି, ସକାଳୁ ଯାଇଁ ଛଉର କରଦେଇ ଆସିବୁ’ ଏହା କହି ସେ କୁଣିଆଘର ଗଲା । ଧନଆ ମନେ ମନେ ବିଚାର କଲା ଯେବେ ଭଲ କରି ଛିଅର କରିବ ତେବେ ସବୁବେଳେ ବାପ ଛିଅର କରିବାକୁ ପଠାଇବ । “ମୁଁ ନ ଗଲେ ଯିବ ସିଏ” । ଏମନ୍ତ ବିଚାର କରି ପଣଅଜା କାଳର ପଟେ ପାକୁଅ କ୍ଷୁର ବାହାର କଲା ଓ ଯଥା ସମୟରେ ଛଉର କରିବାକୁ ଯାଇ ରଜାଙ୍କ ମୁଣ୍ଡ ଓ ମୁଣ୍ଡରେ ଗୁର ଛ ସ୍ଥାନରେ ଖଣ୍ଡିଆ କଲା । ତେଣୁ ଗୋଟିକେତେ ଦୁମନ୍ଦା ପାଇଁ ଆନନ୍ଦରେ ଘରକୁ ଆସିଲା । ସେହିଦିନ ଯଗୁମଣ୍ଡଳ ମହାଜନ ସାହିକ ଲୁଗା ବିକି ଯିବା ବେଳେ ଆପଣା ପୁଅକୁ ଡାକ କହିଲା

"ଆରେ ହୃଣ୍ଡ୍ରା ମୁଁ ବେପାର ସାହୁକ ଯାଉଅଛି, ଲୁଗାକାଠି ଉଅସରେ ଦେଇ ଆସିବୁ" । ବାପ ଗଲାରୁ ହୃଣ୍ଡ୍ରା ତନ୍ତ୍ରଲୁ ଯାଇଁ ଲୁଗା ଖଣ୍ଡିକୁ ଟିକଟିକ କରି କାଟି ବାନ୍ଧି ନଅରକୁ ଘେନଗଲା । ସେଠାରେ ସିପାଇ-ମାନଙ୍କୁ ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହେଲେ, ଓ ହୃଣ୍ଡ୍ରାକୁ ଅର୍ଦ୍ଧଚନ୍ଦ୍ର ( ଗଣ୍ଡିଆ ) ଦେଇଁ ନଅରରୁ ତଡ଼ଦେଲେ । ପରେ ଶ୍ୟାମବାରଙ୍କ ଓ ଯଶୁମଣ୍ଡଳ ଘରକୁ ଆସି ଆପଣା୨ ପୁଅମାନଙ୍କର ଗୁଣ ଶୁଣି ସେମା-ନଙ୍କୁ ଘରୁ ବାହାର କରଦେଲେ । ଧନଆ ଓ ହୃଣ୍ଡ୍ରା ସଙ୍ଗହୋଇ-ବଦେଶକୁ ଗଲେ । ଧନଆ ସଙ୍ଗରେ ମୁଠି ଘେନ ଯାଇଥିଲା, ଓ ହୃଣ୍ଡ୍ରା ଟଗୋଟିଏ କଣ୍ଡ୍ରା ନେଇଥିଲା । ଯାଉଁ ଯାଉଁ ବାଟରେ ଏକ ଜଣା ବାଘ ସେମାନଙ୍କୁ ଘେରଲା । ହୃଣ୍ଡ୍ରା ବାଘକୁ ଦେଖି "ବା-ବା" କରିବାକୁ ଲାଗିଲା । ଧନଆ ବଡ଼ ବୁଦ୍ଧିମନ୍ତ ଥିଲା । ସେ କହିଲା " ଆରେ ଧରିଲେତ ବାନ୍ଧିବା ? ତୁମ୍ଭକୁ ବାନ୍ଧ ବାନ୍ଧ କାହିଁକି ହେଉ-ଅଛୁ ? " ଏହା ଶୁଣି ବାଘ କହିଲା " ମୁଁ ତ ଏହିକ୍ଷଣି ତୁମ୍ଭମାନଙ୍କୁ ଖାଇବି ବାନ୍ଧିବ କାହାକୁ" ? "ଧନଆ କହିଲା ତୋହଠାରୁ ବଳ ଓଲୁ ସଂସାରରେ ନାହିଁ । ଆମ୍ଭ ରଜାଙ୍କର ବ୍ୟାଘ୍ରାଦ୍-ତୈଳରେ ପଡ଼ିବା ପାଇଁ ଶହେ ବାଘର ପ୍ରୟୋଜନ ହେଉଅଛି ସେ ଆମ୍ଭମାନଙ୍କୁ ବାଘ ଧରିବାକୁ ହୁକୁମ ଦେଇଅଛନ୍ତି । ଏଥିରେ ଅନେକ ଗୋଟା ବାଘ ଧର ଏହି ପଞ୍ଜରି ମଧ୍ୟରେ ରଖି-ଅଛି ତୋତେ ନେଲେ ଶ ପୁର ହେବ । ତୁ ପୁଣି ଖାଇବୁ କାହାକୁ?" ଏହା କହି ମୁଠିରୁ ଦର୍ପଣ କାଢ଼ି ବାଘ ଆଗରେ ଧରିଲା "ଦେଖ ଗଣ ଅନେକତ ବାଘ ହେଉଅଛି କି ନା ?" । ଏହା ବୋଲି ଦର୍ପଣକୁ ଥରେ ଲେଖାଏ ବାଘ ଆଗକୁ ଆଣି ପୁଣି ଆପଣା ପଛକୁ ନେଇ ୯୯ ଗୋଟି ବାଘର ପ୍ରତିବିମ୍ବ ତାହାକୁ ଦେଖାଇଦେଲା ।

ତାହାଦେଖି କଣାବାଘ ବଡବ୍ୟସ୍ତ ହୋଇ ଉର୍ଦ୍ଧ୍ୱରେ ପଳାଇଗଲା । ପରେ ଧନଆ ଓ କୃଷ୍ଣା ଯାଉଁ ୨ ଏକ ବନ ମଧ୍ୟରେ ରାତ୍ରି ହେବାରୁ ଏକ ଗଛ ଉପରେ ଚଢ଼ି ରାତ୍ର କଟାଇଲେ । ଏଣେ କଣାବାଘ ସେମାନଙ୍କ ନିକଟରୁ ପଳାଇ ଯାଇଥିଲେ ହେଁ ତାହା ମନରୁ ଡର ଛାଡିଲା ନାହିଁ । ଏଣୁକରି ସେ ଏକ ଗୋରୁ ଗୁହାଳ ମଧ୍ୟରେ ପଶିକରି ଯାଇ ଲୁଚିହୋଇ ଶୋଇଲା । ମନେ କଲା ଏଠାରେ ବାଘ ରହିବା ଅସମ୍ଭବ ସୁତରାଂ ବାଘଧରମାନେ କଦାପି ଏଠାକୁ ଆସିବେ ନାହିଁ । ଅନନ୍ତର ଦୁଇ ଜଣ ଚୋର ଗୋରୁ ଚୋରି କରିବାକୁ ଆସି ସେଠାରେ ପହଞ୍ଚିଲେ । ଗୁହାଳ ଘର ବଡ ଅନ୍ଧାରୁଆ ହେବାରୁ ଚୋରମାନେ ହାତଡ଼ି ୨ ଗୋରୁ ଖୋଜିବାକୁ ଲାଗିଲେ । ଏଥିମଧ୍ୟରେ ଏକ ଚୋରର ହାତ କଣା-ବାଘ ଉପରେ ପଡିବାରୁ ସେ ବାଘକୁ ମୋଟୁଆ ସୋଠୁଆ ଦେଖି ଦାମୁଡ଼ି ମନେ ମନେ କରି କହି ବାନ୍ଧି କହିଲା "ଘରରେ ଭଲ ଦାମୁଡ଼ିଟାଏ ବାନ୍ଧିଛି । ଅନ୍ୟ ଦରକାର କାର ନାହିଁ, ଚାଲ ଯିବା । ବାଟରେ ଗଲେ ଘଣ୍ଟିଆ ଧରିବ, ଅତଏବ ଚାଲ ବଣେ ବଣେ ଯିବା" । ଏହା କହି ସେ ଆଗେ ୨ ଚାଲିଲା, ଓ ତାହାର ସଙ୍ଗ ଚୋର ପଛରୁ କଣାକୁ ଓଡେଇବାକୁ ଲାଗିଲା । କଣା ବିଚାରି ସେମାନଙ୍କୁ ପୂର୍ବୋକ୍ତ ବାଘଧର ମନେ କରି ଭୀତ ହୋଇ ଚାଲିଲା । କିଛି ଦୂର ଗଲା ଉତ୍ତାରୁ ଆଗଚୋରର ଲୁଗା କଣ୍ଟାରେ ଲାଗିବାରେ ସେ ତାହା ଦୁଇ ହାତରେ ଛଡାଇବାକୁ ଲାଗିଲା । କଣା ବାଘ ଏହି ଫୁରସତରେ ଚମ୍ପଟ ଦେଲା । ପରେ ସେ ପଳାଇ ଯାଉଁ ବନ ମଧ୍ୟରେ ଯେଉଁ ଗଛରେ ଧନଆ ଓ କୃଷ୍ଣା ବସିଥିଲେ ତାହା ମୂଳେ ପହଞ୍ଚିଲା । ସେଠାରେ ଆଉ ଅନେକ ବାଘ ମଧ୍ୟ ଥିଲେ । କଣା ସେମାନଙ୍କୁ ସକଳ କଥା କହି ବେଗେ ପଳାଇବାକୁ

କହିବାରୁ ସେମାନେ ତର୍ଜ୍ଜନ ଗର୍ଜ୍ଜନ କରି କହିଲେ " ମନୁଷ୍ୟ ଦୁଇଟାଙ୍କୁ ଏତେ ଡର ! ସେମାନଙ୍କୁ ଦେଖାଇ ପାରିଲେ ବେକ ମୋଡି ରକତ ପିଅନ୍ତୁ" । ଏହା ଶୁଣି ହୁଣ୍ଡା ଗଛ ଉପରୁ ଭୟରେ ପରିସ୍ରା କରି ପକାଇଲା ! ଗଛ ପତ୍ରରେ ପରିସ୍ରା ପଡିବାରୁ ଡର ଡର ଶବ୍ଦ ହେବାରେ ବାଘମାନେ ଉପରକୁ ଚାହିଁଲେ । କଣା କହିଲା "ଏହିତ ବାଘରାଗ ଏଠାକୁ ଆଇଲେଣି ମ ପଳାଉଅଛ", ଏହା କହି ପଳାଇବାକୁ ଉଦ୍ୟତ ହୁଅନ୍ତେ ଅଉ୨ ବାଘମାନେ ତାକୁ ଧରି ରଖି କହିଲେ "ରହ ଏମାନଙ୍କୁ ଏହିକ୍ଷଣି ଖାଇବା । ଆସ ତାମ୍ଭେମାନେ ଗୋଟାକ ଉପରେ ଗୋଟାଏ କ୍ରମଶଃ ଛିଡ଼ା ହୋଇ ଏମାନଙ୍କ ନିକଟରେ ପହୁଞ୍ଚିବା" । କଣା କହିଲା ମୁଁ "ଭାଇ ସମସ୍ତଙ୍କ ତଳେ ରହିବି" । ତହୁଁ ଉତ୍ତାରୁ ସେମାନେ ସେହିପରି କରିବାକୁ ଲାଗିଲେ । ହୁଣ୍ଡା ଭୟରେ ଯାଇ ଗଛର ଅଗରେ ବଡ ସରୁ ଡାଳରେ ଚଢ଼ିଲା । ତାହାର ଓଜନରେ ସେ ଡାଳ ଭାଙ୍ଗିଯିବାରୁ ସେ ଗଛଉପରୁ ତଳେ ଖସି ପଡିଲା ଓ ତାହା ନିକଟରେ ଥିବା ପୁତାର କଣ୍ଡା ମଧ ଖସି ପଡିଲା । ଧନଆ ଭଣ୍ଡାର ଅନ୍ୟ ଡାଳରୁ ଡାକ କହିଲା "ବାନ୍ଧ-ବାନ୍ଧ ଆଗେ ସେ କଣା ବାଘକୁ ବାନ୍ଧ" । ଏହା ଶୁଣି କଣାର ପ୍ରାଣ ଉଡିଗଲା । ସେ ତଳୁଖସି ପଳାଇଲାରୁ ବାଘମାନେ ଦୁଲଦାଲ୍ ହୋଇ ପଡି ପଳାୟନ କଲେ । ହୁଣ୍ଡା ଓ ଧନଆ ମଧ ସେ ବନରୁ ଚାଲିଗଲେ । କଥାରେ କହନ୍ତି ଦେହ ବଳଠାରୁ ବୁଦ୍ଧିବଳ ବଡ ।

---

## ଯୋଆଁଇଁ ଶାଆନ୍ତ ।

ବ୍ରାହ୍ମଣ-ସାଇରେ ନିବାସୀ ରାମପାଢ଼ି ଗୋପୀନାଥ-ପୁରରେ ଏକ ଷାଆନ୍ତ ପଣ୍ଡିତଙ୍କ ଘରେ ବିବାହ କରିଥିଲେ । ପାଢିଙ୍କର ବିଦ୍ୟାର

ସୀମା ନ ଥିଲା । କେବଳ ଅ ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷର କେତେଗୋଟି ଜାଣି ନ ଥିଲେ । ବଳନକରେ ଶ୍ୱଶୁର ଘରୁ ଡକରା ଆସିବାରୁ ପାଡିଙ୍କର ସେଠାକୁ ଯିବାର ଆବଶ୍ୟକ ହେଲା । ତହିଁରେ ତାଙ୍କର ଜଣେ ଆପଣାର ଲୋକ ଆସି ତାଙ୍କୁ ଉପଦେଶ ଦେଲେ "ପାଡି ! ଶ୍ୱଶୁର ଘରକୁ ଯାଉ-ଅଛ, ଉଚ୍ଚ ଜାଗା ଦେଖି ବସିବ, କୋଇଲି ପରି ଭାଷିବ । ଯହିଁରେ ଆପଣାର ନିନ୍ଦା ନ ହୁଏ ତହିଁପ୍ରତି ଦୃଷ୍ଟି ରଖିଥିବ,, ପରେ ପାଡି ଶ୍ୱଶୁର ଘରେ ପହଁଚିଲାରୁ ଚାକର ଗୋଡ଼ ଧୋଇଦେଲା । ପାଡି ଏଣେତେ-ଣେ ଚାହିଁ ପିଣ୍ଡା ଉପରକୁ ଏକ ନିଶୁଣି ଲାଗିଥିବାର ଦେଖି ସେହି ପଥେ ଉଠି ଚାଳ ଉପରେ ବସିଲେ । ଏହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଯେ ଯାହା ପଚାରନ୍ତି ଚାଳ ଉପରେ ଥାଇ ସେ କେବଳ କୁଉ କୁଉ କରିବାକୁ ଲାଗିଲେ । ଏଥିଉତ୍ତାରୁ ଭୋଜନର ସମୟ ଉପସ୍ଥିତ ହେବାରୁ ଶଳାମାନେ ଯାଇ ତାଙ୍କୁ ଚାଳଉପରୁ ଘେନି ଆସିଲେ । ତହୁଁ ସେ ଅନ ଭୋଜନ ସାରି ଏକ ଘରେ ପଲଙ୍କ ଉପରେ ପହୁଡିଲେ । କିଛି କାଳ ଉତ୍ତାରୁ ସେ ଗାଁର ଜଣେ ପଣ୍ଡିତ ପାଡିଙ୍କୁ ଦେଖିବାକୁ ଆସିଲେ । ପାଡିଙ୍କ ଶ୍ୱଶୁର ପଣ୍ଡିତଙ୍କୁ ସଙ୍ଗେ ଘେନି ଆପଣା ଜୋଆଇଁଙ୍କୁ ଦେଖାଇବାପାଇଁ ତାଙ୍କ ଶୋଇଲା ଘରେ ପହଁଚିଲେ । କିନ୍ତୁ ପାଡି ପଣ୍ଡିତଙ୍କର ଶବ୍ଦ ଶୁଣି ଖଟ ତଳେ ଯାଇ ଲୁଚି ରହିଲେ । ପରେ ତାଙ୍କ ଶ୍ୱଶୁର ଜୋଇଙ୍କୁ ନ ଦେଖି ସେ କେଉଁଠାକୁ ଯାଇଥିବେ ଏହା ମନେ କରି ଆସିବା ଅପେକ୍ଷାରେ ରହିଲେ ଓ ଉକ୍ତ ପଣ୍ଡିତଙ୍କ ସଙ୍ଗେ ସଂସ୍କୃତ ଭାଷାରେ କଥାବାର୍ତ୍ତା କରିବାକୁ ଲାଗିଲେ । ପାଡି ଖଟ ତଳେ ଥାଇ ଶୁଣିଲେ ଯେ ପଣ୍ଡିତ ଓ ଶ୍ୱଶୁରଙ୍କ କଥାରେ ଅନେକ ଅନୁସ୍ୱାର ଲାଗୁଅଛି ଏଣୁ ଅନୁସ୍ୱାର ଲଗାଇଲେ ସଂସ୍କୃତ ହୁଅଇ ଏହା ତାଙ୍କର ଦୃଢ଼ବିଶ୍ୱାସ ହେଲା । ତହୁଁ ସେ ଖଟ ତଳରୁ ଏହା କହିଂ

ବାହାରିଲେ "ଅନୁସ୍ୱାରଂ ଦେଲେଂ ଯେବେ ସମ୍ପୂର୍ଣ୍ଣଂ ହୋଇଯୁଂ" ତେବେ କର୍ମାଂ ହୋଇଂ ସାଆନ୍ତୁଂ ଖଟଂ ତଳେଂ ଶୋଇଯୁଂ ।" ଏହା ଶୁଣି ପଣ୍ଡିତ କହିଲେ" ବାଃ ବାଃ ଏଟି ଗୁରୁଗୋଡ଼ିଆ ଯୋ-ଇଁ" । ଏହା କହି ସେ ଗୁଳି ଗଲେ । ତହିଁଉତ୍ତାରୁ ସଞ୍ଜବେଳ ହେଲାରୁ ଶ୍ୱଶୁର ମାନେ ସନ୍ଧ୍ୟାର ଜାଗା କରି ଯୋଇଁଙ୍କୁ ସନ୍ଧ୍ୟା କ-ରିବାକୁ ଡାକିଲେ । କିନ୍ତୁ ଯୋଇଁ ତ ଅହ୍ଲାର କଣା ସ୍ତୁତଗଂ କହିଲେ "ଆଜି ଆମ୍ଭର ମନ ଠିକ ନାହିଁ ଏଣୁକରି ସନ୍ଧ୍ୟା କରିବୁଁ ନାହିଁ" । ପରେ ଶଳାମାନେ ନୋଷା କୋଷି ଆଦି ତାଙ୍କ ନିକଟକୁ ନେଇ ଆସି ନିତାନ୍ତ ଜିଗର କରିବାରୁ ସେ ଗୋଟାକେତେ ତାଳ ମାରି ଦୁଇ ଦଣ୍ଡ ଚକ୍ଷୁ ବୁଜି କୌଣସି ମତେ ସନ୍ଧ୍ୟା କାମ ସାରିଲେ । ଶେଷରେ ଭୋଜନର ସମୟ ହେଲାରୁ ଶ୍ୱଶୁର ଜାଗା କରି ଭୋଜନ କରିବାକୁ ଡାକିଲା । ପାତ୍ର କହିଲେ ଆମ୍ଭର ଦେହରେ ସୁଖ ନାହିଁ ଆଜ କିଛି ଖାଇବୁଁ ନାହିଁ । ପରେ ଶଳାମାନେ ଅନେକ ପ୍ରକାରରେ ବୁଝାଇ ଆସନ ଉପରେ ଓଟାଳି ନେଇ ବସାଇବାରୁ ଭୋଜନ କରିବାକୁ ବସିଲେ । ତାଙ୍କ ସଙ୍ଗରେ ବିରାଡ଼ି ମଧ ଭୋଜନ କରିବାକୁ ଲାଗିଲା । ତାହା ଦେଖି ସ୍ତ୍ରୀଲୋକମାନେ ହସିବାକୁ ଲାଗିଲେ । ଅନନ୍ତର ଜଣେ ଶ୍ୱଶୁର ବାଡ଼ି ନେଇ ଆସିବାରୁ ବିରାଡ଼ି ପଳାଇ ଗଲା । ତହୁଁ ଏକ ଶଳା କହିଲା "ପାତ୍ର ତୁମ୍ଭେ ଅନ୍ଧ କି ? ବିରାଡ଼ି ଯେ ତୁମ୍ଭ ସଙ୍ଗରେ ଖାଉଛି " ପାତ୍ର କହିଲେ " ନା ଭାଇ ଆମ୍ଭେ ଗୋଟାଏ କଥା ମନରେ ଭାଳୁଥିଲୁଁ ଏଣୁକରି ତାହା ଦେଖି ପାରି ନାହୁଁ " । ଏହା କହିଁ ସେ ପୁଣି ଭୋଜନ କରିବାକୁ ଲାଗିଲେ । ଏମନ୍ତ ସମୟରେ ତାଙ୍କ ଶାଶୁ ତାଙ୍କୁ ବ୍ୟଞ୍ଜନ ପରିବେଷଣ କରିବାକୁ

ଆସିଲେ । ତାଙ୍କର ପଦଶବ୍ଦ ଶୁଣି ପାତ୍ରି ମନେ ମନେ କହିଲେ "ବଗଡ ଆସୁଅଛି ଅସୁ ଅସୁ ଏଥର ଦେଖୁଛି ।" ତହୁଁ ଉତ୍ତାରୁ ଶାଶୁ ଯେମାତ୍ର ତାଙ୍କ ପତ୍ରରେ ବ୍ୟଞ୍ଜନ ଦେଲେ ସେ ତତ୍କ୍ଷଣାତ୍ "ନବାଂଶୀୟା ବଗଡ" ବୋଲି କହି ଶାଶୁଙ୍କ ମୁଣ୍ଡରେ ଏକ ଗୋପୁଡ଼ା ମାଇଲେ । ଏହା ଦେଖି ଶଳାମାନେ ରାଗି ଉଠି ପାତ୍ରିଙ୍କୁ ଖୁନାଯୋଗ୍ୟ ବଧାତୋ଼ ଦେଲେ । ତହୁଁ ଅରଦନ ବଡ଼ ସକାଳୁ ସେ ଆପଣା ଘରକୁ ପଳାଇ ଗଲେ । ଆପଣା ଦୋଷକୁ ମିଚ୍ଛକଥା କହି ଘୋଡ଼ାଇବାକୁ ବସିଲେ ପାତ୍ରିଙ୍କପରି ଦୁର୍ଦ୍ଦଶା ଭୋଗ କରିବାକୁ ହୁଏ ।



## ଦୁଇଗୋଡଆ ପଶୁ ।

ଏକ ସମୟରେ ଦିଲ୍ଲିର ପାଦଶା ବଙ୍ଗଦେଶର ରାଜା କୃଷ୍ଣଚନ୍ଦ୍ରଦେବ ବାହାଦୁରଙ୍କୁ ଗୋଟାକେତେ ଦୁଇଗୋଡଆ ପଶୁ ମାଗି ପଠାଇଲେ । ରାଜା ଏହା ଶୁଣି ବଡ଼ ଆଶ୍ଚର୍ଯ୍ୟ ହେଲେ । ଯେହେତୁ ସକଳ ପଶୁତ ଚାରିଗୋଡଆ ଦୁଇଗୋଡଆ ପଶୁ ଅଛି ବୋଲି କେବେ ଶୁଣି ନାହିଁ । ଶେଷରେ ସେ ମନ୍ତ୍ରୀମାନଙ୍କ ସଙ୍ଗେ ବିଚାର କରି ତିନିଜଣ ପଣ୍ଡିତଙ୍କୁ ପଠାଇଦେଲେ । ସେମାନଙ୍କ ମଧ୍ୟରେ ଜଣେ ନୈୟାୟିକ, ଦ୍ୱିତୀୟ ବ୍ୟକ୍ତି ବୈଦ୍ୟ ଓ ତୃତୀୟ ବ୍ୟକ୍ତି ଜ୍ୟୋତିଷ ଥିଲେ । ସେମାନେ ରାଜାଙ୍କର ମୁଣ୍ଡରେ ଲୁଗାପଟା ପୋଥି ପାଞ୍ଜି ଦେଇ ଦିଲ୍ଲି ଯାତ୍ରାକଲେ । ଯାଉଁ ଯାଉଁ ପଥରେ ଏକ ନଦୀ ପଡିଲା । ସେ ନଦୀରେ ଡଙ୍ଗା ନଥିବାରୁ ପଣ୍ଡିତମାନଙ୍କୁ ରାଜାଙ୍କର ସହିତ ଜଳରେ ପଶିବାକୁ ହେଲା । ଏମନ୍ତ ସମୟରେ ରାଜାଙ୍କର ଗୋଡ଼ ହଠାତ୍ ଗଣ୍ଡକୁ ଖସିଯିବାରୁ ସେ ଉନ୍ମତ୍ତ ହୋଇ ଚିତ୍କାର କରିବାକୁ ଲାଗିଲା "ସାନ୍ତ ବୁଡି ମଲି ସାନ୍ତ ମୋତେ ଧର" ଜ୍ୟୋତିଷ କହିଲେ "ଅହେ ତର୍କବାଗୀଶ !

ଅହେ କବିରାଜ ! ଅକାରଣ କାହିଁକି ତାଙ୍କୁ ଧରିବାକୁ ଚେଷ୍ଟା କରୁଅଛ; ତାହାର ଏ ବର୍ଷ ଜୀବ [ ବୃହସ୍ପତି ] ଅଷ୍ଟମସ୍ଥ, ଶନି ଉଚ୍ଚଗତ ହୋଇଅଛନ୍ତି , ସେ କି ବଞ୍ଚିବ ?, ସ୍ୱସ୍ୱସ୍ଥ [ ଶସ୍ୟଂସ୍ଥ ] ଗୃହମାଗତଂ , ଆପଣାର ଜନପଦଗୁଡ଼ିକ ରକ୍ଷାକର ” ଏହା କହି ସେ ଯାହାର ଜନପଦ ସବୁ ମୁଣ୍ଡେଇଲେ ; ଗ୍ରାକରଟି ବୃଡ଼ିଗଲା । ପଣ୍ଡିତମାନେ ମନକୁ ଏହା କହି ପ୍ରବୋଧ ଦେଲେ ଯେ, ଯାହାର ବୃହସ୍ପତି ଅଷ୍ଟମ ଓ ଶନି ଉଚ୍ଚଗତ ହୁଅନ୍ତି ତାହାର ଏହି ଦଶା ଘଟଇ । ପରେ ସେମାନେ ଯାଉଁ ୨ ବେଳ ଅଧିକ ହେବାରୁ ଭୋକ ଓ ଶୋଷରେ ବଡ଼ କାତର ହେଲେ । ଏମନ୍ତ ସମୟରେ ପଥରେ ଏକ ହାଟ ପଡ଼ିଲା ସେଠାରେ ପଣ୍ଡିତମାନେ ବସି ବୈଦ୍ୟଙ୍କୁ ହାଟକୁ ସଉଦା ଅଣିବାକୁ ପଠାଇଲେ । ବଇଦ ହଳଯାକ ହାଟରେ ବୁଲି୨ ଖାଇବା ଦ୍ରବ୍ୟ ପାଇଲେ ନାହିଁ; କାରଣ ଯାହା ସେଠାରେ ବିକି ହେଉଥିଲା ତାହା ସବୁ ଅପଥ୍ୟ । ଶେଷରେ ସନ୍ଧ୍ୟାସମୟରେ ତିନି ଗୋଟି ପଟୋଳ କିଣି ଆଣିଲେ । ଏଣେ ତାଙ୍କର ସଙ୍ଗିମାନେ ଭୋକରେ ବଡ଼ କାତର ହୋଇଥିଲେ । ତିନିଗୋଟି ପଟୋଳ ଦେଖି ବଡ଼ ରାଗି କହିଲେ “କବିରାଜ ! ଅନେକ ଶାସ୍ତ୍ର ପଢ଼ି ଆପଣଙ୍କର ବୁଦ୍ଧି ବିଗିଡ଼ ଯାଇଅଛି ନୋହିଲେ ମାଛ, ପାଣିକଖାରୁ, ବାଇଗଣ ଚୂଡ଼ାଗୁଡ଼ କି ଡାଲଚାଉଳ ଛାଡ଼ି ତିନି ଗୋଟି ପଟୋଳ କାହିଁକି ଘେନି ଆସିଲ ।” କବିରାଜ କହିଲେ “ଅହେ ଆପଣମାନଙ୍କର ପଢ଼ା ଅଛି ମାତ୍ର ଶାସ୍ତ୍ରରେ ଜ୍ଞାନ ଜନ୍ମି ନାହିଁ । ଦ୍ରବ୍ୟ ଗୁଣରେ ସ୍ପଷ୍ଟ ଲେଖା ଅଛି “ ମତ୍ସ୍ୟ ପିତ୍ତକରଂ କୁଷ୍ମାଣ୍ଡଂ କଫକରଂ ” କିନ୍ତୁ “ ପଟୋଳଂ ତ୍ରିଦୋଷହରଂ ,, ଅର୍ଥାତ୍ ମାଛ ଖାଇଲେ ପିତ୍ତ ବଢ଼େ, ପାଣି କଖାରୁରେ କଫ ହୁଅଇ କିନ୍ତୁ ପଟୋଳରେ କଫ ବାତ ପିତ୍ତ ନାଶ ହୁଅଇ । ଆମ୍ଭେ କି ଅପାଠୁଆ ଯେ

ଅନୁଚିତ କର୍ମ କରିବୁଁ ?” ଏହା ଶୁଣି ପଣ୍ଡିତମାନେ ଆନନ୍ଦିତ ହୋଇ କହିଲେ “ଯଥାର୍ଥ ସେଥିଯୋଗୁଁ ଶାସ୍ତ୍ରରେ ଲେଖାଅଛି ‘ ଧନିନଃ ଶ୍ରୋତ୍ରିୟୋ ରାଜା ନଦୀ ବୈଦ୍ୟସ୍ତୁ ପଞ୍ଚମଃ । ପଞ୍ଚ ଯତ୍ର ନ ବିଦ୍ୟନ୍ତେ ତତ୍ର ବାସଂ ନ କାରୟେତ୍’ । ଅର୍ଥାତ୍ ଧନୀ କୁଳୀନ ରାଜା ନଦୀ ଓ ବୈଦ୍ୟ ଯେଉଁଠାରେ ନାହିଁ ସେଠାରେ ବାସ କରିବ ନାହିଁ” ଅନନ୍ତର ପଣ୍ଡିତମାନେ ଯାଇଁ ଦିଲ୍ଲିରେ ପହଞ୍ଚିଲେ । ସେଠାରେ ପାଦଶାଙ୍କର ସଭାପଣ୍ଡିତ ସେମାନଙ୍କୁ ସମାଦର କରି ଆପଣା ଘରେ ବସା ଦେଲେ । ପରେ ରାଜଦର୍ଶନ କରିବାର ସ୍ଥିର ପଡିଲା । ତହୁଁ ନୈୟାୟିକ କହିଲେ “ରାଜଦର୍ଶନ ମହତ୍ ବ୍ୟାପାର ଅତଏବ ଯାତ୍ରାର ସମୟ ନିର୍ଣ୍ଣୟ କରିବାର କର୍ତ୍ତବ୍ୟ” ଜ୍ୟୋତିଷ ଖଡି ପକାଇ ଦେଖିଲେ ରାତ୍ର ତୃତୀୟ ପ୍ରହର ସମୟରେ ଯାତ୍ରାକଲେ ଭଲ ହେବ । ତାହାଇ ନିଶ୍ଚୟ ହେଲା । ସେ ସମୟରେ ସମସ୍ତେ ଶୋଇଅଛନ୍ତି ଅଥଚ ପଣ୍ଡିତମାନେ ରାଜଦର୍ଶନକୁ ଚାଲିଲେ ସିଂହଦ୍ୱାର ନିକଟରେ ପହୁଁଞ୍ଚି ଦେଖିଲେ ଯମଦୂତ ପରି ସନ୍ତ୍ରି ଠିଆ ହୋଇଅଛି । ତେଣୁ ପାଇଖାନା ପଥେ ଉଆସ ଭିତରେ ପଶିଲେ, ଦେହସାକ ବିଷ୍ଠାମୟ ହୋଇଗଲା । ଏମନ୍ତ ଅପବିତ୍ର ହୋଇଁ କେମନ୍ତେ ରାଜଦର୍ଶନ କରିବେ ? ଶରୀର ପରିଷ୍କାର କରିବାକୁ ଜଳ ଖୋଜିଲେ କିନ୍ତୁ ସେଠାରେ ଜଳ ନାହିଁ ? ଏମନ୍ତ ସମୟରେ ଜଳକବାଟି ବାଟେ ଦେଖିଲେ ଯେ ଭିତରେ ପଲଙ୍କ ଉପରେ ଏକ ପୁରୁଷ ଓ ଏକ ସ୍ତ୍ରୀ ଶୋଇଅଛନ୍ତି । ଏହା ଦେଖି ନୈୟାୟିକ କହିଲେ ‘ ଆମ୍ଭେ ବ୍ୟାକରଣରେ ପଢିଅଛୁଁ “ ସ୍ତ୍ରୀ ନଦୀବତ୍ ସ୍ତ୍ରୀ ନଦୀପ୍ରାପ୍ୟ ” ଅତଏବ ଏହିଠାରେ ସ୍ନାନ କରିବା,, । ଏହା ସ୍ଥିର କରି ପଣ୍ଡିତମାନେ “ ଗଙ୍ଗାଗଙ୍ଗେତି ଯୋବ୍ରୂୟାତ୍ ”

ବୋଲି ଉଚ୍ଚରେ ଉଚ୍ଚାରଣ କରି ଢୁଲି ଢାଲି ହୋଇଁ ଖଟଉପରେ ପଡିଲେ । ସେହି ଶବ୍ଦରେ ରଜା ଓ ରାଣୀଙ୍କର ନିଦ ଭାଙ୍ଗିଲା । ପଣ୍ଡିତ ମାନେ ରାଜାଙ୍କୁ ଦେଖି ଆପଣା୨ ରଚିତ ଶ୍ଳୋକ ପାଠ କରି ରାଜାଙ୍କର ସ୍ତବ ଆରମ୍ଭକଲେ । ରାଜା ମଧ୍ୟ ଦୁଇଗୋଡିଆ ପଶୁ ଦେଖି ଆନନ୍ଦିତ ହେଲେ । ପୁରୁଣାକାଳିଆ ପଣ୍ଡିତ ମାନେ ଠିକଏ ଓଲୁ ନ ଥିଲେ କି ? ।

---

## ଲାଲ ବଡ଼୍ଡକ୍‌କଡ଼ ।

ଏକ ଗ୍ରାମରେ ଲାଲ ବଡ଼୍ଡକ୍‌କଡ଼ ନାମରେ ଏକ ମୁସଲମାନ ଥିଲା । ସମସ୍ତେ ତାଙ୍କୁ ବଡ଼ ବୁଦ୍ଧିଆ ଜାଣି ମାନ୍ୟ କରୁଥିଲେ । କୌଣସି ବିଷୟରେ ସନ୍ଦେହ ହେଲେ ତାଙ୍କୁ ପଚାରିବା ସେ ଗ୍ରାମରେ ଏକ ପ୍ରଥା ଥିଲା । ଦିନକରେ ସେ ଗ୍ରାମବାସୀ କେତେକ ବ୍ୟକ୍ତି ଏକ ସ୍ଥାନରେ ହାତୀଖୋଜ ଦେଖି ତାହା ଚିହ୍ନି ନ ପାରିବାରୁ ଆଶ୍ଚର୍ଯ୍ୟ ହୋଇଁ ଲାଲ ବଡ଼୍ଡକ୍‌କଡ଼ଙ୍କୁ ଅଣି ତାହା ଦେଖାଇଲେ । ସେ ତାହା ଦେଖି କିଛିକାଳ ଭାବି କହିଲା "ଲାଲ୍‌ବଡ଼୍ଡକ୍‌କଡ଼ ବୁଝ୍‌ଗଏ୍ୟ ମରମ ନବୁଝେ କୋଇ । ପାଓଁଚକ୍କି ବାନ୍ଧକର୍ ହରନ୍‌ନେ କୁଦା ହୋୟ୍" ଅର୍ଥାତ୍ ହରିଣ ଗୋଡରେ ଚକି ବାନ୍ଧି ଡେଇଁ ଡେଇଁ ଯାଇ ଥିବାରୁ ଏପରି ଚିହ୍ନ ହୋଇଅଛି । ଗ୍ରାମ ବାସିମାନେ ତାହାର ବିଶ୍ୱାସ କଲେ । କିଛି ଦିନ ଉତ୍ତାରୁ ଲାଲ ବଡ଼୍ଡକ୍‌କଡ଼ ମରିଗଲା । ତାହା ପୁଅ ନିୟାଜାନଙ୍କୁ ମଧ୍ୟ ଲୋକେ ସେହି-ପରି ବୁଦ୍ଧିମନ୍ତ ଜାଣି ସବୁ କଥାରେ ତାହାର ଉପଦେଶ ନେବାକୁ ଲାଗିଲେ । ଦିନେ କେତେକଜଣ ତେଲି ଗୋଟାଏ ଘଣାର ଗଣ୍ଡି ଘେନି ଯାଉଁ୨ ସନ୍ଧ୍ୟା ହେବାରେ ତାହା ଏକ ଆମ୍ବ ଗଛଙ୍କୁ ଡେରି ଦେଇଁ ନିକଟରେ ଜଣକ ଘରକୁ ରନ୍ଧାବଢ଼ା କରିବାକୁ ଗଲେ ।

ଏମନ୍ତ ସମୟରେ ତାହା ଜଣେ ଦେଖି ସେ ଗ୍ରାମର ସକଳ ଲୋକଙ୍କୁ ଡାକି ଆଣିଲା । ସମସ୍ତେ ଉକ୍ତ ଗଣ୍ଡି କାଠକୁ ଦେଖି ଭୟରେ ନିତାନ୍ତ ବ୍ୟସ୍ତ ହୋଇ ମିଁୟାଁ ଜୀକୁ ଡ଼ାକି ଆଣିଲେ । ମିୟାଁଜୀନ ଅନେକ-କ୍ଷଣ ଚିନ୍ତାକରି କହିଲେ" ଲାଲବୁଝକ୍କଡ଼କେ ବେଟା ମେଁ ତୋ ମିୟାଁଜାନ । ପୁରନା ହୋକେ ଗିର ପଡାହେ ଅଲ୍ଲାକା ନାଶଦାନ" ଅର୍ଥାତ୍ ଈଶ୍ୱରଙ୍କର ନାଶଦାନ ପୁରୁଣା ହେବାରୁ ସେ ତାହା ଫୋ-ପାଡ଼ ଦେଇଅଛନ୍ତି । ଏହା ଶୁଣିବା ମାତ୍ରକେ ସେ ଲୋକମାନେ ଉକ୍ତ କାଠକୁ ବ୍ରାହ୍ମଣ ଡକାଇ ଷୋଡ଼ଶୋପଚାରରେ ପୂଜା କରି-ବାକୁ ଲାଗିଲେ । ପରେ ତେଲମାନେ ସେମାନଙ୍କର ଉକ୍ତ କାର୍ଯ୍ୟ ଦେଖି ସେମାନଙ୍କୁ ନିତାନ୍ତ ମୂର୍ଖ ବୋଲି ଜାଣି କହିଲେ" ଈଶ୍ୱରଙ୍କର ଆଜ୍ଞା ହୋଇଛି ଏହି ନାଶଦାନରେ ଗୂପା ଛୋଇବାକୁ ହେବ । ଅତଏବ ତୁମ୍ଭେମାନେ ରୂପା ଓ ବଣିଆମଜୁରି ସହିତ ଏ ପୁରୁଣା ନାଶଦାନକୁ ଅମୁକ ସ୍ଥାନରେ ପହଁଚାଇ ଦେଇ ଆସ । ନୋହିଲେ ତୁମ୍ଭମାନଙ୍କର ସର୍ବନାଶ ହେବ" । ଏହା ଶୁଣି ଲୋକେ ମିୟାଁଜାନ ମୁଖକୁ ଚାହିଁବାରେ ସେ ତତ୍କ୍ଷଣାତ୍ ସେହିପରି କରିବାକୁ କହିଲେ । ଲୋକେ ସର୍ବସ୍ୱ ବିକ୍ରୟ କରି ସେହିପରି କାର୍ଯ୍ୟ କଲେ । ଏ ସଂସା-ରରେ ଅନେକ ଲାଲବୁଝକ୍କଡ଼ ଅଛନ୍ତି, ଯେ ତାଙ୍କୁ ଚିହ୍ନି ନ ପାରେ ତାହାର ସର୍ବନାଶ ହୁଏ ।

ଇତି